# ଅନାବନା

(ଶିଶୁ କବିତା)

ଜଗନ୍ନାଥ ପ୍ରସାଦ ଦାସ

ପ୍ରଥମ ସଂସ୍କରଣ- ୨୦୦୮

An Ink Odisha Publication 2008

**ANABANA**

(Poems for Children)

Jagannath Prasad Das

Cover design & Illustration : Tanuj Mallick
Published by Ink Odisha
115 (P) Acharya Vihar, Bhubaneswar-751013, Orissa, India
and printed at **Ink Odisha**, Acharya Vihar, Bhubaneswar-13

**Rs. 20/-**

## ସୂଚୀ

# କିଏ କେମିତି ଗଲା



ଶତପଥୀ ଗଲେ ଫଟଫଟିରେ
ପିଟର ଚାଲିଲା ସ୍କୁଟର ଧରି
ମାଇକେଲ ଗଲା ସାଇକେଲରେ
ମଟୁ ବାବୁ ଗଲେ ମଟର ଚଢ଼ି ।





ରାମ ବାବୁଙ୍କର ଟ୍ରାମ ସୁବିଧା
ବାସୁ ବାବୁଙ୍କର ଟାଉନ୍ ବସ୍
ପ୍ଲେନରେ ଉଡ଼ିଲେ ମିସେସ ସେନ
ଚାଲି ଚାଲି ଗଲା ଚରଣ ଦାସ ।

# ବିଲେଇ ନାନୀ

ବିଲେଇ ନାନୀ କରିଛି ଓଷା
ଏ ଯାଏ ଖାଇଛି ଗୋଟିଏ ମୂଷା
ଦୁଇଟି ପୋକ, ତିନିଟି ଢୋକ
ତଥାପି ଲାଗୁଛି ଆହୁରି ଭୋକ ।



ଚାରି ଝିଟିପିଟି ପାଞ୍ଚଟି ବଣି
କେମିତି କୋଉଠୁ ଖାଇବ ଆଣି
ଅନେଇ ବସିଛି ବିଲେଇ ନାନୀ ।

# ମାଛ ଧରାଳୀ

ପୋଖରୀ ବନ୍ଧରେ ଛଅ ଜଣ ସାଙ୍ଗ ବନ୍‌ଶୀ ନେଇ
ପାଖାପାଖି ହୋଇ ବସିଥିଲେ ମାଛ ଧରିବା **ପାଇଁ ।**

ରାମର କଣ୍ଟାରେ ବାଳିଆ ପଡ଼ିଲା
ଶ୍ୟାମର କଣ୍ଟାରେ ଭାକୁର
ହରକୁ ମିଳିଲା ମିରିକାଳି ମାଛ
ହରିକୁ ମିଳିଲା ମାଗୁର ।

ଆଉ ଦି ଜଣଙ୍କୁ ମିଳିଥାନ୍ତା ହେଲେ
ମୀନ ଦଣ୍ଡକିରି ଚିଙ୍ଗୁଡ଼ି
ତୋଡ଼ି ଅବା ଗେଣ୍ଡା କୋଚିଆ ଶାମୁକା
କିଛି ବି ନ ହେଲେ ବେଙ୍ଗୁଲି ।

କପାଳ ଖରାପ ଯଦୁ ବନ୍‌ଶୀରେ
ଧରାଦେଲା ପଚା ଆପଲ
ମଧୁ ବିଚରାର କଣ୍ଟାରେ ଉଠିଲା
ପୁରୁଣା ହାୱାଇ ଚପଲ ।



# ଛୋଟ

ଛୋଟ କଂସା ତାଟିଆ
ଛୋଟ ଥାଳି ଥାଳିଆ
ଛୋଟ ଖଟ ଖଟିଆ
ଛୋଟ ଚାଳ ଚାଳିଆ ।





ଛୋଟ ଘର କୁଡ଼ିଆ
ଛୋଟ ଡଙ୍କା ଚାମୁଚା
ଛୋଟ ପୁଡ଼ା ପୁଡ଼ିଆ
ଛୋଟ ଲୁଗା ଗାମୁଛା ।

ଛୋଟ ହାଣ୍ଡି ଆଟିକା
ଛୋଟ ତାଡ଼ ତାଡ଼ିଆ
ଛୋଟ କୋଠା ବାଟିକା
ଛୋଟ ଦୀଘି ଗଡ଼ିଆ ।



ଛୋଟ କୁଲା କୁଲେଇ
ଛୋଟ ବାଘ ବିଲେଇ
ଛୋଟ ଝିଅ ଫୁଲେଇ ।

# ଘର

ରଜା ରହିଥାଏ ରାଜବାଟୀରେ
ଜେଲ ଘରେ ରହେ ଚୋର
ଦଦରା କୋଠାରେ ବାବନା ଭୂତ
ଚଷାର କୁଡିଆ ଘର ।



ସାପ ରହିଥାଏ ଉଇ ହୁଙ୍କାରେ
ଡାଳରେ ଚଢ଼େଇ ବସା
ପଙ୍କ ଗାଡ଼ିଆରେ ବେଙ୍ଗର ଘର
ଗାତ ଖୋଳି ରହେ ମୂଷା ।

ମହୁମାଛି ଥାଏ ମହୁଫେଣାରେ
ଦେଉଳ ହେଉଛି ଦିଅଁଙ୍କ ଘର
ଗୁମ୍ଫାରେ ରହନ୍ତି ମୁନି ଋଷି ଭାଲୁ
ଗୁଣ୍ଡୁଚିର ଘର ଗଛ କୋରଡ଼ ।



ନିଜ ନିଜ ଘର ଗେଣ୍ଡା କରିଛ
ବସ୍ତାନି ବହିର ଘର
କୁନି ପିଲା ଘର ମା'ର କୋଳ
ସପନର ଆଖି ତଳ ।

କିନ୍ତୁ,
ଫୁଟପାଥ ନୁହେଁ ମଣିଷର ଘର
ବାଘ ଘର ନୁହେଁ ଚିଡ଼ିଆ ଖାନା
ପଂଜୁରୀ ନୁହଇ ଚଢ଼େଇର ବସା
କାହା ଘର ନୁହେଁ ପୁଲିସ ଥାନା ।

# ଆଠଗଡ଼ର ପିଲା

ନିଘୋଡ଼ ନିଦରେ ଶୋଇ ରାତି ଆଠଟାରେ
ସ୍ୱପ୍ନରେ ଦେଖିଲା ଯାହା ହେଉଛି ସେଠାରେ :

ଆଠଜଣ କାଠୁରିଆ କାଟୁଛନ୍ତି କାଠ
ଆଠ ଗୋଟିପୁଅ ମିଶି କରୁଛନ୍ତି ନାଟ ।

ଅକ୍ଟୋପସ ବସିଅଛି ଆଠ ହାତ ଖୋଲି
ଆଠଟି ସମୁଦ୍ର ଜୀବ ଧରିନେବ ବୋଲି ।

ସମ୍ମୁଖରେ ଅଷ୍ଟଧାତୁ ଦେବୀ ପ୍ରତିମାର
ଅଷ୍ଟ ଅବଧାନୀ କରେ ସାଷ୍ଟାଙ୍ଗ ଜୁହାର ।





ଏତେବେଳେ ଆଠଜଣ ଚିରଗୁଣୀ ଆସି
ଆଠଟି ଡାହାଣୀ ଆଠ ଭୂତ ସଙ୍ଗେ ମିଶି
ଡ଼ରାଇଲେ ନାଚିକୁଦି ତା ସ୍ୱପ୍ନ ଭିତରେ
ଚମକି ଉଠିଲା ପିଲା ନିଦ ବାଉଳାରେ ।

ଆଖିଖୋଲି ଦେଖିନେଲା ଚାରିଆଡ଼େ ତାର
ଜଗି ରହିଛନ୍ତି ତାକୁ ଆଠ ଦିକ୍‌ପାଳ ।

ଏଥରକ ଆଉ କିଛି ଭୟ ନାହିଁ ଜାଣି
ନିଦରେ ନିଦକ ହୋଇ ଶୋଇଗଲା ପୁଣି ।

# ପୁଷି ବିଲେଇ

ପୁଷି ବିଲେଇ ରେ ପୁଷି ବିଲେଇ
ଏତେ ଦିନ ଥିଲୁ କୋଉଠି ଯାଇ ?

ଚାଲି ଯାଇଥିଲି ଦରିଆ ପାରି
ବିଲାତୀ ରାଣୀକୁ ଦେଖିବି ବୋଲି ।



ପୁଷି ବିଲେଇରେ ପୁଷି ବିଲେଇ
କି ଭଳି ସେଠାରେ ରାଣୀର ଛଇ ?

ଯୁବରାଣୀ ହେଲା ଘର ବୁଢ଼େଇ
ରାଣୀ ବସିଥିଲେ ମହଁ ଫୁଲେଇ ।



ପୁଷି ବିଲେଇରେ ପୁଷି ବିଲେଇ
ମନାଇଲୁ ତାଙ୍କୁ କି କଥା କହି ?

କିଛି ନ କହି ମୁଁ ଆସିଲି ଫେରି
ବିଲାତ ଦେଶକୁ ଜୁହାର କରି ।

# ଆଖି ମେଲା ସପନ

ଦରିଆ ଉପରେ ରେଳଗାଡ଼ି ଯାଏ
ଆକାଶରେ ଉଡ଼େ ବଳଦ ଗାଡ଼ି
ମୂଷା ଦଉଡ଼ିଛି ବିରାଡ଼ି ପଛରେ
ନେଉଳ ରହିଛି ସାପକୁ ଡରି ।



ମାହୁନ୍ତ ଉପରେ ହାତୀ ଚଢ଼ିଯାଏ
ଦିନ ଦି ପହରେ ଚମକେ ତାରା
ଘାସ ଖାଇଗଲା ଗାଈ ବାଛୁରୀକୁ
ରାତିରେ ପଡୁଛି ଡାହାଣୀ ଖରା ।



ପଥର ଭାସୁଛି ପୋଖରୀ ଉପରେ
ଦୁଇ ଦୁଇ ମିଶି ହୋଇଲା ତେର
ମଲା ଲୋକ ବସି ସିଗାରେଟ ପିଏ
ପୁଲିସ ବାଲାକୁ ଧରିଲା ଚୋର ।

ଅଧାରାତି ହେଲା ନିଦ ଆସୁନାହିଁ
ଆଖି ମେଲା କରି ଖଟରେ ପଡି
ଦୁନିଆ ଯାକର ବାଜେ କଥା ସବୁ
ସପନକୁ ମୋର ଆସୁଛି ମାଡ଼ି ।

# ଜୀବ ଅଜୀବ



ଅତି ଭୋକେ ଲୋକ ଖାଇଲେ କୋଇଲି
ଚୋର ନେଇଗଲା କଜଳପାତି
ମାଙ୍କଡ଼ ଆସିଲା ମାଙ୍କଡ଼ି ଲଗାଇ
ବନ୍ଧୁକ ଘୋଡାକୁ ଟିପିଲା ପାତି
ଘୁଷୁରି ଘୁଷୁରି କିଛି ବାଟ ଯାଇ
ହାତୀଅଣ୍ଡ ପାଖେ ମରିଲା ହାତୀ ।



# ଗଧ କାଉ



ଗଧ କହିଲା, ରେ କାଉ
କେଡ଼େ ସୁନ୍ଦର ତୁ ଗାଉ
ମନ ପୂରି ଯାଏ ଗଳା ଶୁଣି ତୋର
ଯେବେ କରୁ ରାଉ ରାଉ ।

କାଉ କହିଲା, ରେ ଗଧ
ମୁହଁ ତୋ ପୁନେଇ ଚାନ୍ଦ
କି ଭଳି ସୁନ୍ଦର ରୂପକୁ ପାଇଛୁ
ଦେଖି ଦେଲେ ମନ୍ ବୋଧ ।



# ଓଟ

ଓଟରେ ଓଟ
ବେକ ପିଠି ତୋର ଛୋଟ କି ମୋଟ ?

ନଡ଼ ବଡ଼ ଚାଲି ଲହଲହକା
ଯୁଆଡୁ ଦେଖିଲେ ଦିଶଇ ବଙ୍କା

ବେଢଙ୍ଗ ବେଢ଼ବ ବେଢାର ମାପ
କିଏ ଦେଲା ତତେ ଏ ଭଳି ରୂପ ?



# ଘୋଡ଼ା

ଏକମାତ୍ର ଜନ୍ତୁ ମିଛିମିଛିକା
ଡିମ୍ବ ଦିଏ ବୋଲି ଜଣା
କିଣା ହୋଇଥାଏ ଛ' ଟଙ୍କାରେ କିନ୍ତୁ
ଖାଏ ନ' ଟଙ୍କାର ଦାନା ।
ସରି ନୁହେଁ ସିଏ ଯୋଡ଼ାକୁ
ଦେଖିଚ ଏ ଭଳି ଘୋଡ଼ାକୁ ?



# ଦେଖରେ ଦେଖ

ଦେଖରେ ଦେଖରେ ଦେଖ
କାନ୍ଥରେ ଘଡ଼ି ଏକ ।

ମୂଷା ଗଲା ତାକୁ ଚଢ଼ି
ଏକ ବଜାଇଲା ଘଡ଼ି
ମୂଷା ଗଲା ତଳେ ପଡ଼ି
ପଳାଇଲା ଡରି ମରି ।

କାନ୍ଥରେ ଘଡ଼ି ଏକ
ଦେଖରେ ଦେଖରେ ଦେଖ ।





# ଅଜବ ଜୀବ

ଓଟକୁ ଯଦି ଭାବୁଚ ତମେ
ଅଜବ ଜୀବ ଏକ
ଓକାପି ଲ୍ଲାମା ଜିରାଫ ୟାକ
ହିପୋପଟାମସ ଦେଖ ।



# ଠେକୁଆ କଇଁଛ

ଠେକୁଆ କଇଁଛ ବାହାରିଲେ ଦିନେ ଦୌଡ଼ରେ ନେଇ ଭାଗ
ପ୍ରାଇଜ ପାଇବ ସେ ପାଖରେ ଯାଇ ପହଞ୍ଚିବ ଯିଏ ଆଗ ।

ଦଉଡ଼ି ଦଉଡ଼ି ଅଧାବାଟ ଯାଇ ଦେଖି ବରଗଛ ଛାଇ
କଇଁଛ ରହିଛି ଅନେକ ପଛରେ ଠେକୁଆ ପଡ଼ିଲା ଶୋଇ ।



ଧୀରେ ଅତି ଧୀରେ କଇଁଛ ଚାଲିଛି ହୋଇଗଲା ବାଟ ଅଧା
ବରଗଛ ତଳେ ଠେକୁଆକୁ ଟପି ଆଗକୁ ଚାଲିଲା ସିଧା ।

ଦେଖୁଥିବା ଲୋକେ କହିଲେ ଏଥର କଇଁଛ ଜିଣିବ ଏକା
ମଠ ହେଉ ପଛେ ଲାଗି ରହିଥିଲେ ଜିତାପଟ ତାକୁ ଲେଖା ।

ଏତେବେଳେ ଠିକ ଠେକୁଆ ହାତରେ ବାଜିଲା ଆଲାର୍ମ ଘଡ଼ି
ଧଡ଼ପଡ଼ ହୋଇ ଗହନ ନିଦରୁ ଉଠିଲା ସେ ଆଖି ମଳି ।



ଦେଖିଲା ଯାଉଛି କଇଁଛ ଆଗରେ ପାଦରେ ପାଦକୁ ମାପି
କୁଦା ମାରି ଗଲା ଠେକୁଆ ତାହାକୁ ସହଜରେ ଗଲା ଟପି ।

ଠେକୁଆର ହେଲା ଜିତାପଟ, ଗଲା କଇଁଛ ବିଚରା ହାରି
ନୀତି କଥା ଯାହା ଶୁଣିଥିଲେ ଲୋକେ ସବୁ ଗଲା ଜଳି ପୋଡ଼ି ।

ନୂଆ ନୀତିଶିକ୍ଷା :
ଦଉଡ଼କୁ ଦଉଡ଼ ଆରାମକୁ ଆରାମ
ଜିତାପଟ ହେଲା ଯାର ତା ନାଁ ଆଲାର୍ମ ।

# ଲୋକଟି

ତରତର ହୋଇ      ଗଲାବେଳେ ଦିନେ
    ନିତି ଦିନିଆ ମୋ ବାଟରେ
ସେଇ ଲୋକଟିକୁ      ଭେଟିଲି ମୁଁ ଯିଏ
    ନ ଥିଲା ସେ ଦିନ ସେଠାରେ ।

ଆଜି ବି ନ ଥିଲା      ସେ ବାଟରେ ସିଏ
    କେଜାଣି କି ହେବ କାଲିକି
ମରୁଛି ମୁଁ ଭାବି      କିଏ ସେଇ ଲୋକ
    ମୋ ପଛେ ଲାଗିଛି କାହିଁକି !



# ହାତ ଦେଖା ହାତୀ



କଳା କନା ବାନ୍ଧି ଆଖିରେ ତାର
ପଚାରିଲେ ତାକୁ କେ ଅଛି ଆଗରେ
ଛୁଇଁ ଦେଇ ଖାଲି କହି କି ପାର ?

ଛୁଇଁଲା ସବୁ ସେ ହାତକୁ ବଢାଇ
ଆଗ ପଛ ବାଁ ଡାହାଣ ହାତି
ଅନେକ ବିଚାରି କହିଲା ଶେଷକୁ
ଏଇଟି ଗୋଟିଏ ବିରାଟ ହାତୀ ।

ଆଖିରୁ ଖୋଲିଲା କଳାକନା ଯେବେ
ଅନାଇ ଦେଖିଲା ଭଲାରେ ଭଲା
ଆଗରେ ରହିଛି କାନ୍ଥ, ଚାରି ଖମ୍ବ
ଗୋଟିଏ ଦଉଡ଼ି ଦୁଇଟି କୁଳା !

ବୁଝିଲା ସେ ଏକ ଗଧ
ବୁଦ୍ଧି ବିଚାରରେ ନିପଟ ଢଲକା
ଆଖି ଥାଉ ଥାଉ ଅନ୍ଧ ।



# ରମା ଓ ରାମ



ସକାଳେ ଦିନେ କୂଅ ମୂଳକୁ
ପାଣି ଆଣିବା ପାଇଁ
ବାଲଟି ଧରି ଭାଇ ଭଉଣୀ
ଦି ଜଣ ଥିଲେ ଯାଇ ।

ଗୋଡ଼ ଖସଡ଼ି ପଡ଼ିଲା ରାମ
ଉଠିଲା ନାହିଁ ଜମା
ଘରକୁ ଦୁଇ ବାଲଟି ପାଣି
ଆଣିଲା ଏକା ରମା ।



# କିଏ କୁଆଡ଼େ ଗଲା

ଅ ଗଲା ଅଠରନଳା ଦେଖିବ ବୋଲି ରଥ
ଆ ଗଲା ଆଠଗଡ଼ କାଟିବ ବୋଲି କାଠ ।

ଇ ଗଲା ଇରମ ସେଠି ଖାଇବ ଲୁଣ ରାନ୍ଧି
ଉ ଗଲା ଉମରକୋଟ ଓଭରକୋଟ ପିନ୍ଧି ।

ଏ ଗଲା ଏରସମାକୁ ଚୂଡ଼ା ଚାଉଳ ନେଇ
ଓ ଗଲା ଓଲଟପୁର ହାତ ଯୋଡ଼ିବା ପାଇଁ ।

ସୁବିଧା ନାହିଁ ଆଖ ପାଖରେ ରଖିବା ପାଇଁ ପାଦ
ଔ ତେଣୁ ପଳାଇ ଗଲା ଔରଙ୍ଗାବାଦ ।

# ଡିନର

ନାଁ ମିଷ୍ଟର କକ୍, ନୁହେଁ ସାମାନ୍ୟ ସେ ପକ୍ଷୀ
ଲାଲ ଟୋପି ପିନ୍ଧି ମୁହଁ ଉପରକୁ ଟେକି
ଆଖି ତାର ଢକ ଢକ
କରୁଥିଲା ବକ ବକ
ଚାଲୁଥିଲା ଧପ ଧପ ତଳକୁ ନ ଦେଖି ।

କିଏ ପଚାରିଲା, ଭାଇ, କିଆଁ ତରତର
ମୁହଁ ବଙ୍କାଇ କହିଲା, ଅଛି ମୋ ଡିନର
ରାତି ଠିକ ଆଠ ବେଳେ
ଫାଇଭ ଷ୍ଟାର ହୋଟେଲରେ
ବାଜେ କଥା ଏତେବେଳେ ଆଉ ନ ପଚାର ।



ଏଇ ଭଳି ମିଷ୍ଟର କକ୍ ଠିକ ସମୟରେ
ସିଧା ପହଞ୍ଚିଲେ ଯାଇ ଟେବୁଲ ଉପରେ ।

# ଭେକ





ସିଂହ ସେ ନୁହେଁ ବସେ ରାଜା ଭଳି ଠାଣିରେ
ମାଛ ନୁହେଁ ରହିପାରେ ପୋଖରୀର ପାଣିରେ ।

ବାଘ ନୁହେଁ ଜାଗା ଜାଗା କୁଦା ମାରି ଯାଏ
ନେଉଳ ନୁହେଁ ସେ ହେଲେ ବୁଦା ପାରି ଥାଏ ।



ଚୋର ନୁହେଁ ସାରା ରାତି ଶୁଏ ନାହିଁ ଜମା
ବାବାଜୀ ନୁହେଁ ସେ ଥାଏ ଜପରେ ନିକମା ।

ନଈରେ ପହଁରି ପାରେ ନୁହଇ ସେ ଚେଙ୍ଗ
ଅଦ୍ଭୁତ ଭେକ ତାର ସେ ହେଉଛି ବେଙ୍ଗ ।



# ଯୋଡ଼ାକୁ ଘୋଡ଼ା

ଦିଅଁ ଗଢୁ ଗଢୁ  ମାଙ୍କଡ଼ ହେଲା
ବଡ଼ ହୋଇଗଲା ଛୋଟ
ଚାରିଜଣ ମିଶି  ଆଙ୍କିଲେ ଘୋଡ଼ା
ଦିଶିଲା ସେ ଠିକ ଓଟ ।



